ସେହି ଦେଶ ଧନ୍ୟ, ଯାହାର ପରମେଶ୍ୱର ପ୍ରଭୁ ଅଟନ୍ତି; ଏବଂ ଯେଉଁ ଲୋକମାନଙ୍କୁ ସେ ନିଜର ଉତ୍ତରାଧିକାରୀ ପାଇଁ ବାଛିଛନ୍ତି।
PSALM 33:12



# 1 ଭଗବାନ ତୁମକୁ ଭଲ ପାଆନ୍ତି |

## କାରଣ ଈଶ୍ୱର ଜଗତକୁ ଏଡ଼େ ପ୍ରେମ କଲେ ଯେ, ସେ ଆପଣା ଅଦ୍ୱିତୀୟ ପୁତ୍ରଙ୍କୁ ଦାନ କଲେ, ଯେପରି ଯେ କେହି ତାହାଙ୍କଠାରେ ବିଶ୍ୱାସ କରେ, ସେ ବିନଷ୍ଟ ନ ହୋଇ ଅନନ୍ତ ଜୀବନ ପ୍ରାପ୍ତ ହୁଏ । ଯୋହନ 3:16

ଚୋର କେବଳ ଚୋରି, ବଧ ଓ ବିନାଶ କରିବା ନିମନ୍ତେ ଆସେ; ସେମାନେ ଯେପରି ଜୀବନ ପାଆନ୍ତି ଓ ପ୍ରଚୁର ଭାବରେ ପାଆନ୍ତି, ଏଥିନିମନ୍ତେ ମୁଁ ଆସିଅଛି । ଯୋହନ 10:10

# 2 ମଣିଷ ପ୍ରକୃତି ଦ୍ୱାରା ପାପୀ ଅଟେ |

ସମସ୍ତେ ତ ପାପ କରିଅଛନ୍ତି, ପୁଣି, ଈଶ୍ୱରଙ୍କ ଗୌରବରହିତ ହୋଇଅଛନ୍ତି, ରୋମୀୟ 3:23

କାରଣ ପାପର ବେତନ ମୃତ୍ୟୁ...ରୋମୀୟ 6:23

ମନୁଷ୍ୟମାନଙ୍କ ନିମନ୍ତେ ଯେପରି ଥରେ ମାତ୍ର ମୃତ୍ୟୁ, ଆଉ, ତାହା ପରେ ବିଚାର ନିରୂପିତ ଅଛି, ସେହିପରି ଖ୍ରୀଷ୍ଟ ମଧ୍ୟ ଅନେକଙ୍କ ପାପ ବହନ କରିବା ନିମନ୍ତେ ଥରେ ମାତ୍ର ଉତ୍ସର୍ଗୀକୃତ ହେଲେ, କିନ୍ତୁ ଦ୍ୱିତୀୟ ଥର ପାପ ସକାଶେ ନୁହେଁ, ବରଂ ଯେଉଁମାନେ ତାହାଙ୍କ ଅପେକ୍ଷାରେ ଅଛନ୍ତି, ସେମାନଙ୍କ ପରିତ୍ରାଣ ନିମନ୍ତେ ଦର୍ଶନ ଦେବେ । ଏବ୍ରୀ 9:27-28

କିନ୍ତୁ ଯେଉଁମାନେ ଭୀରୁ, ଅବିଶ୍ୱାସୀ, ଘୃଣ୍ୟ-କଳଙ୍କିତ, ନରଘାତକ, ବ୍ୟଭିଚାରୀ, ମାୟାବୀ ଓ ପ୍ରତିମାପୂଜକ, ସେମାନେ ଓ ସମସ୍ତ ମିଥ୍ୟାବାଦୀ, ଅଗ୍ନି ଓ ଗନ୍ଧକ ପ୍ରଜ୍ୱଳିତ ହ୍ରଦରେ ଅଂଶ ପାଇବେ; ଏହା ହିଁ ଦ୍ୱିତୀୟ ମୃତ୍ୟୁ । ପ୍ରକାଶିତ 21:8

## 3 ଯୀଶୁ ଖ୍ରୀଷ୍ଟ ସ୍ୱର୍ଗକୁ ଯିବାର ଏକମାତ୍ର ପଥ |

ଯୀଶୁ ତାହାଙ୍କୁ କହିଲେ, ମୁଁ ପଥ, ସତ୍ୟ ଓ ଜୀବନ; ମୋ' ଦେଇ ନ ଗଲେ କେହି ପିତାଙ୍କ ନିକଟକୁ ଯାଏ ନାହିଁ। ଯୋହନ 14:6

ଯେଣୁ ଆମ୍ଭମାନଙ୍କୁ ଈଶ୍ୱରଙ୍କ ନିକଟକୁ ଆଣିବା ପାଇଁ ଖ୍ରୀଷ୍ଟ ମଧ୍ୟ ଧାର୍ମିକ ହୋଇ ଅଧାର୍ମିକମାନଙ୍କ ନିମନ୍ତେ ପାପ ହେତୁ ଥରେ ମୃତ୍ୟୁଭୋଗ କଲେ। ସେ ଶରୀରରେ ମୃତ୍ୟୁଭୋଗ କଲେ ସତ, କିନ୍ତୁ ଆତ୍ମାରେ ଜୀବିତ ହେଲେ; ୧ ପିତର 3:1୫

ଯେ ପୁତ୍ରଙ୍କଠାରେ ବିଶ୍ୱାସ କରେ, ସେ ଅନନ୍ତ ଜୀବନ ପ୍ରାପ୍ତ ହୋଇଅଛି, ମାତ୍ର ଯେ ପୁତ୍ରଙ୍କୁ ଅମାନ୍ୟ କରେ, ସେ ଜୀବନ ଦେଖିବ ନାହିଁ, କିନ୍ତୁ ସେ ଈଶ୍ୱରଙ୍କ କ୍ରୋଧର ପାତ୍ର ହୋଇ ରହିଥାଏ। ଯୋହନ 3:36

## 4 ଆମର ପରିତ୍ରାଣ ପାଇଁ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କ ଉପରେ ଆମର ବିଶ୍ୱାସ ରଖିବା ଆବଶ୍ୟକ |

କାରଣ ଅନୁଗ୍ରହରେ ବିଶ୍ୱାସ ଦ୍ୱାରା ତୁମ୍ଭେମାନେ ପରିତ୍ରାଣ ପାଇଅଛ; ତାହା ତୁମ୍ଭମାନଙ୍କ ନିଜଠାରୁ ହୋଇ ନାହିଁ, ତାହା ଈଶ୍ୱରଙ୍କ ଦାନ, କର୍ମରୁ ନୁହେଁ, ଯେପରି କେହି ଦର୍ପ ନ କରେ। ଏଫିସୀୟ 2:୫-୨

ବିଶ୍ୱାସରେ ଭଗବାନଙ୍କୁ ଏହି ପ୍ରାର୍ଥନା କୁହ:

ପ୍ରଭୁ ଯୀଶୁ, ମୋ ପ୍ରତି ତୁମର ମହାନ ପ୍ରେମ ପାଇଁ ଆପଣଙ୍କୁ ବହୁତ ଧନ୍ୟବାଦ | ମୁଁ ସ୍ୱୀକାର କରେ ଯେ ମୁଁ ଜଣେ ପାପୀ ଏବଂ ମୁଁ କ୍ଷମା ମାଗୁଛି | ମୋର ପାପର ଦଣ୍ଡ ଦେବାକୁ କ୍ରୁଶରେ ମରିବା ପାଇଁ ଧନ୍ୟବାଦ | ମୁଁ ମୃତମାନଙ୍କ ମଧ୍ୟରୁ ପୁନରୁତ୍ଥାନରେ ବିଶ୍ୱାସ କରେ | ବର୍ତ୍ତମାନଠାରୁ, ମୁଁ ମୋର ପ୍ରଭୁ ଏବଂ ତ୍ରାଣକର୍ତ୍ତା ଭାବରେ ତୁମକୁ ବିଶ୍ୱାସ କରେ | ମୁଁ ତୁମର ଅନନ୍ତ ଜୀବନର ଉପହାର ଗ୍ରହଣ କରେ ଏବଂ ମୁଁ ମୋ ଜୀବନକୁ ତୁମ ନିକଟରେ ସମର୍ପଣ କରେ | ତୁମର ଆଦେଶ ପାଳନ କରିବାକୁ ଏବଂ ତୁମ ଦୃଷ୍ଟିରେ ସନ୍ତୁଷ୍ଟ ହେବାକୁ ମୋତେ ସାହାଯ୍ୟ କର | AMEN

କାରଣ ଯେ କେହି ପୁତ୍ରଙ୍କୁ ଦର୍ଶନ କରି ତାହାଙ୍କଠାରେ ବିଶ୍ୱାସ କରେ, ସେ ଯେପରି ଅନନ୍ତ ଜୀବନ ପ୍ରାପ୍ତ ହୁଏ, ଏହା ହିଁ ମୋହର ପିତାଙ୍କର ଇଚ୍ଛା; ଆଉ, ମୁଁ ତାହାକୁ ଶେଷ ଦିନରେ ଉତ୍ଥାପନ କରିବି। ଯୋହନ 6:40

ସେ ଆମ୍ଭମାନଙ୍କୁ ଅନ୍ଧକାରର କ୍ଷମତାରୁ ଉଦ୍ଧାର କରି ଆପଣା ପ୍ରେମପାତ୍ର ପୁତ୍ରଙ୍କ ରାଜ୍ୟ ମଧ୍ୟକୁ ସ୍ଥାନାନ୍ତର କରିଅଛନ୍ତି; ଯୀଶୁଙ୍କଠାରେ ଆମ୍ଭେମାନେ ମୁକ୍ତି, ଅର୍ଥାତ୍, ପାପ କ୍ଷମା ପାଇଅଛୁ। କଲସୀୟ 1:13-14

ଏଣୁ ଯଦି କେହି ଖ୍ରୀଷ୍ଟଙ୍କଠାରେ ଅଛି, ତେବେ ସେ ନୂତନ ସୃଷ୍ଟି ହୋଇଅଛି ପୁରାତନ ବିଷୟସବୁ ଲୋପ ପାଇଅଛି, ଦେଖ, ନୂତନ ବିଷୟସବୁ ହୋଇଅଛି। ୨ କରିନ୍ଥୀୟ 5:17

ମାତ୍ର ଯେତେ ଲୋକ ତାହାଙ୍କୁ ଗ୍ରହଣ କଲେ, ଅର୍ଥାତ୍, ଯେଉଁମାନେ ତାହାଙ୍କ ନାମରେ ବିଶ୍ୱାସ କଲେ, ସେ ସମସ୍ତଙ୍କୁ ସେ ଈଶ୍ୱରଙ୍କ ସନ୍ତାନ ହେବା ନିମନ୍ତେ ଅଧିକାର ଦେଲେ; ଯୋହନ 1:12